# ରତ୍ନ-ରେଣୁ ।

ଉତ୍କଳ ସେବକାଶ୍ରମ
କର୍ତ୍ତୃକ
ପ୍ରକାଶିତ ।



ପ୍ରଥମ ମୁଦ୍ରଣ ।



THE UTKAL SAHITYA PRESS,
CUTTACK.
1906.

ମୂଲ୍ୟ ଠ ୦ ୵ ଅଣା ।

Digitized by srujanika@gmail.com

## "ଉତ୍କଳ ସମ୍ମିଳନୀ" ପ୍ରତି

### ଉତ୍ସର୍ଗପତ୍ର ।



ଦୁଃଖ-ଦୈନ୍ୟଜର୍ଜରିତ ଉତ୍କଳଦେହରେ,
"ସମ୍ମିଳନୀ" ତୁହି ସିନା ଢାଳୁଛୁ ଅମର୍ତ୍ତ୍ୟ,
ନୈରାଶ୍ୟ-ମସିର ଘୋର ଦୁର୍ଭେଦ୍ୟ ରାଜ୍ୟରେ
ତୁହି ସିନା ସଞ୍ଚାରଲୁ ଉଜ୍ଜ୍ୱଳ ଆଲୁଅ ।

ଲକ୍ଷ ଲକ୍ଷ ଉତ୍କଳୀୟ ପଥଭ୍ରାନ୍ତ ହୋଇ
ଭ୍ରମୁଥିଲେ ଇତସ୍ତତଃ ଶୂନ୍ୟମନେ ଦିନେ,
ତୋହ ଆବର୍ତ୍ତେ ସଖି ! ଚଇତନ୍ୟ ପାଇ
ଧାଇଁଲେଣି ସର୍ବେ ଆଜି କରମ ପ୍ରାଙ୍ଗଣେ ।

ସର୍ବାଙ୍ଗ ଆବରି ଯତ୍ନେ ସାହସ-ବର୍ମରେ
କଟିରେ କର୍ମର ଅସି,—ପୃଷ୍ଠେ ଧୈର୍ଯ୍ୟ-ଚର୍ମ,
—ହସ୍ତେଙ୍ଗିତେ ଡାକୁ, ଯହିଁ ଡିଣ୍ଡି ଦମ୍ଭରେ
ଉତ୍କଳୀୟେ ତୁହି, ଧରି ବଜ୍ରନିଶାଣ;—

ସେହି ମୁଖେ ଧାନ୍ତି ସର୍ବେ ଘୋର କଳରବେ,
ଉତ୍ସାହବ୍ୟଞ୍ଜକ ସେହି ଅଶନିଗମ୍ଭୀର

Digitized by srujanika@gmail.com

ତୋ ମୁଖନିଃସୃତ ଆଜ୍ଞା ଶୁଣି କେହ୍ନି ଲଭେ
ନ ରହନ୍ତି କେବେ ସଖା !—ସର୍ବେ ଆଗଭର ।

ସେହ୍ନି କୁଳେ ଜନ୍ମ ଲଭି, ମୁଁ କପାଁ ହଟିବ ?
—ମୋର ମଧ୍ୟ ଶିରୋଧାର୍ଯ୍ୟ ଉପଦେଶ ତବ;
ସେହ୍ନି ସୁଖଯାତ୍ରାରେ ମୁଁ ଯାଚିବି ପଦବୀ
ନେଇ ସୁଖେ ଆଲିଙ୍ଗିବି ଜାଣନ୍ତୁ ଆହବ ।

ସମ୍ମିଳନ ! ନେତୃବର ମାନରକ୍ଷା ପାଇଁ
ଭକ୍ତିଭରେ "ରତ୍ନରେଣୁ" ଅର୍ପୁଛି ପଦ୍ମରେ:—
ପ୍ରଜାଗଣ ଭେଟି ଯଥା ଦିଅନ୍ତି ରାଜାଠାଇଁ,
ଘେନ ସଖା ! ଘେନ ମୋର ଭେଟି ଆଦରରେ ।

Digitized by srujanika@gmail.com

# ଭୂମିକା ।

ଭାରତବର୍ଷର ଚତୁର୍ଦ୍ଦିଗରେ ଆଜି କାଲି ଏକ ଅଭିନବ ଜାତୀୟସ୍ରୋତ ପ୍ରବାହିତ ହେବାକୁ ଆରମ୍ଭ ହୋଇଅଛି । ଏ ଉତ୍କଳ ପ୍ରଦେଶ ବିଶାଳ ଭାରତର ଏକ କୋଣରେ ଅଜ୍ଞାତ ଦୀନହୀନ ଭାବରେ ଅବସ୍ଥିତ ହେଲେହେଁ ନୈସର୍ଗିକ ବିଧାନମତେ ଏହା କିଞ୍ଚିତ୍ ପରିମାଣରେ ସେହି ଜାତୀୟ ସ୍ପନ୍ଦନ ଅନୁଭବ କରୁଅଛି । ଦେଶମିଶ୍ରଣ ପ୍ରସ୍ତାବ, ଗଞ୍ଜାମ ସମିତି, ସାରସ୍ୱତ ସମିତି, ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ସମ୍ମିଳନୀ; ଏହା ଛଡ଼ା ଅନ୍ୟାନ୍ୟ ସ୍ଥାନୀୟ ସାମ୍ପ୍ରଦାୟିକ ସଭା ସମିତିମାନ ଏଥିର ପରିଚୟ। ଏହି କେତେକ ବର୍ଷ ମଧ୍ୟରେ ଆମ୍ଭେମାନେ ଜାତୀୟ ଗୀତ, ସଙ୍ଗୀତ, ଉଦ୍ଦୀପକ ପଦ୍ୟ ପ୍ରବନ୍ଧମାନ ଉତ୍କଳ ସାହିତ୍ୟକ୍ଷେତ୍ରରେ ଦେଖି ପାରୁଅଛୁଁ । ଏ ସବୁ ସେହି ଜାତୀୟ ଭାବର ସ୍ୱାଭାବିକ ପ୍ରସ୍ଫୁରଣ ଭିନ୍ନ ଆଉ କିଛି ନୁହେ । ଏହି ଜାତୀୟ ଜାଗରଣରେ ପ୍ରତ୍ୟେକଙ୍କର ଯଥାଶକ୍ତି ଯୋଗ ଦେବା ବିହିତ । ସେତୁବନ୍ଧ ନିର୍ମାଣରେ ସୁଗ୍ରୀବ ହନୁମାନ୍ ମହାଶୈଳ ବହନ କରି କର୍ତ୍ତବ୍ୟ ସାଧନ କରିଥିଲେ । କିନ୍ତୁ ଏହା ବୋଲି ଚୁଣ୍ଡିଚ ବିମର୍ଷ ନିଶ୍ଚେଷ୍ଟ ନ ରହି ସାମାନ୍ୟ ଧୂଳିକଣା ବହନ କରି ସେଥିରେ ନିଜର କ୍ଷୁଦ୍ର ଶକ୍ତି ନିୟୋଗ କରିଥିଲା । ଏହି ପ୍ରାଚୀନ ଆଦର୍ଶ ଦୃଷ୍ଟିରେ ଏ ପୁସ୍ତିକା ଖଣ୍ଡି ଧୃଷ୍ଟତା ଦୋଷରେ ଅଭିଯୁକ୍ତ ହେବ ନାହିଁ ।

ଗତ ତିନି ବର୍ଷ ହେଲା ଏହି ପ୍ରକାର କତିପୟ ପ୍ରବଚନ ପତ୍ରାବଳୀରେ ଚିତ୍ରିତ ହୋଇ ନାନା ସ୍ଥାନର ସଭା ସମିତିରେ ବ୍ୟବହୃତ ହୋଇ ଆସୁଅଛି, ପୋଷ୍ଟକାର୍ଡ, ଲଫାପା ପ୍ରଭୃତି ଉପରେ ଏହାର ସନ୍ନିବେଶ ପ୍ରାୟ ଦେଖା ଯାଇଅଛି । କ୍ରମେ ଏଗୁଡ଼ିକ ପ୍ରତି ଅନେକଙ୍କର ମନୋଯୋଗ ଆକୃଷ୍ଟ ହୋଇଥିବା ବଡ଼ ସୁଖର ବିଷୟ । ଉତ୍କଳର୍ ଗ୍ରାମଆଡ଼େ ଏହାର

Digitized by srujanika@gmail.com

ପ୍ରସାର ବଢ଼ିଲେ ଜାତୀୟ ଜାଗରଣରେ ଏହା ଯଥାକଞ୍ଚିତ୍ ସାହାଯ୍ୟ କରି ପାରିବାର ଆଶା । ସାଧାରଣ ସଭା ସମିତିରେ, ବୈଠକଖାନାର ସାଙ୍ଗ-ସଙ୍ଗାରେ, ଚିଠିପତ୍ରର ଶିରୋନାମାରେ, କଥୋପକଥନରେ ଏହା ଉଦାହରଣ ବାଣୀରୂପେ ପ୍ରଚଳିତ ହୋଇ ପାରେ ।

ସତ୍କାର୍ଯ୍ୟ—କାର୍ଯ୍ୟରେ କରିବା ସର୍ବୋତ୍କୃଷ୍ଟ; ମନରେ ଭାବିବା ତାହା-ଠାରୁ ଊଣା । ଯେଉଁମାନେ କାର୍ଯ୍ୟ ବା ଭାବନାରେ ସଦନୁଷ୍ଠାନ ସଙ୍ଗେ ସମ୍ବନ୍ଧ ରଖନ୍ତି ନାହିଁ, ସେମାନଙ୍କ ପକ୍ଷେ ସତ୍‌କଥାର କେବଳ ଆବୃତ୍ତି ସାମାନ୍ୟ ଶ୍ରେୟସ୍କର ନୁହେଁ । କୌଣସି ବିଷୟ ନ ବୁଝି ମୁହଁରେ ବାରମ୍ବାର ବୋଇଲେ କାଳକ୍ରମେ ମନ ସେହି ଆଡ଼କୁ ଢଳି ହୋଇ ଯିବା ବିଚିତ୍ର ନୁହେଁ । ଏହାହିଁ ମାନବପ୍ରକୃତିର ଧର୍ମ । ଏହାର ଉପରେ ନିର୍ଭର କରି ଶ୍ରୀ ଚୈତନ୍ୟଦେବ ତାହାଙ୍କ ପ୍ରତିଷ୍ଠିତ ପରମାର୍ଥ ଧର୍ମ ପ୍ରଚାର କରି-ଥିଲେ । ଆଜି ସମାଜର କଲ୍ୟାଣକାମନାରେ ତାହାଙ୍କ ଚରଣରେ ପ୍ରଣାମ କରି ସ୍ୱଜାତି ଓ ସ୍ୱଦେଶ ପ୍ରତି "ପ୍ରେମ" ବୃଦ୍ଧି ହେବା ଆଶାରେ ଦୀନହୀନ ଅଧମ କେହି ଏହା ପ୍ରକାଶ କରିବାକୁ ପ୍ରୟାସୀ ହେଲା ।

ପରିଶେଷରେ ବକ୍ତବ୍ୟ ଏହି ଯେ ଏହି ପୁସ୍ତକରେ ଲୋକପ୍ରଚଳିତ କତିପୟ ପ୍ରବଚନ ଓ ସ୍ୱନାମଖ୍ୟାତ ଜଗନ୍ନାଥ ଦାଶଙ୍କ ଶ୍ରୀମଦ୍‌ଭାଗବତ ଓ ଅନ୍ୟାନ୍ୟ ଗ୍ରନ୍ଥକାରମାନଙ୍କ ଗ୍ରନ୍ଥରୁ ଜାତୀୟ ଭାବ-ଉଦ୍ଦୀପକ କେତେକ ପଂକ୍ତି ସଂଗୃହୀତ ହୋଇ ଏହାର ସ୍ଥାନେ ସ୍ଥାନେ ସନ୍ନିବେଷ୍ଟ ହୋଇଅଛି । ସେଥିପାଇଁ ପ୍ରଣେତା ସେମାନଙ୍କ ନିକଟରେ ଚିରକୃତଜ୍ଞତାପାଶରେ ଆବଦ୍ଧ ରହିଲେ ।

———:*:———

Digitized by srujanika@gmail.com



ଭା[redacted]—ବନ୍ଦନା[redacted]

( ହିଁ ହିଁ ଠେ —[redacted])

ଆଜି ଏକତାନେ, ବୋଲ ଭାଇମାନେ,
"ବନ୍ଦେ ଶ୍ରୀ ଭାରତ-ଜନନୀମ୍" ।
ଭୁଲି ଜାତିଭେଦ, ଭୁଲି ନୀଚ ପଦ,
ବୋଲ ବୋଲ "ବନ୍ଦେ ଜନନୀମ୍" ।
( ଘୋଷା )

ହୀରକ-ଖଚିତ-ଶିରସ୍ତ୍ରାଣ-ଛଳେ
ଭୂଷିତ ମସ୍ତକ ଯାର ହିମାଚଳେ,
ଉଭାସିତ ପୁଣି ନୀହାର-ସୁମାଳେ,
ବନ୍ଦେ ତାଂ ଭୁବନ-ମୋହିନୀମ୍ । ୧ ।

ଜାହ୍ନବୀ, ଯମୁନା, ପୁଣି ସରସ୍ୱତୀ
ରତ୍ନହାର-ସମ ଧବଳ ସୁକାନ୍ତ
ମଣ୍ଡିଛନ୍ତି ଯାର ସମୁନ୍ନତ ଛାତି,
ବନ୍ଦେ ତାଂ ସୀନ୍ଧୁଜବାହିନୀମ୍ । ୨ ।

Digitized by srujanika@gmail.com

ମୁକୁତା-ଜଡ଼ିତ କଣ୍ଠୀବକ୍ଷପର
କଣ୍ଠୀତଟେ ଯାର ଶୋଭେ ଗୋଦାବରୀ,
ଉପୁଜାଇ ଚିତ୍ତେ ପୁଲକ-ଲହରୀ,
ବନ୍ଦେ ତାଂ ଆନନ୍ଦଦାୟିନୀମ୍ । ୩ ।

ଦଳେ ଦଳେ ଯାର ବୀର-ବାଳାଗଣ
କଲକଲ ଧ୍ୱନି ଚୁମ୍ବନ୍ତି ଚରଣ,
ପ୍ରେମ-ରସେ ଅବା ହୋଇ ନିମଗନ,
ବନ୍ଦେ ତାଂ କମଳାରୂପିଣୀମ୍ । ୪ ।

ପଦତଳେ ଯାର କନକ-ସିଂହଳ,
ଶ୍ରୀଚରଣେ ଯଥା କନକ-କମଳ,
ଲବଣ ସଲିଳେ ଧୁଏ ଚଳ ଚଳ,
ବନ୍ଦେ ତାଂ ବାରିଜବାସିନୀମ୍ । ୫ ।

ସର୍ବ ଅଙ୍ଗେ ଯାର ଆଭରଣସମ
ଅଗଣ୍ୟ ଅମୂଲ୍ୟ କୀର୍ତ୍ତି ଅନୁପମ
ବିରାଜିତ ଅଛି ଜନମନୋରମ,
ବନ୍ଦେ ତାଂ ସୁଭୂଷା-ଶୋଭିନୀମ୍ । ୬ ।

ରାମଚନ୍ଦ୍ର ଆଦି କର୍ମ-ବୀରଗଣ
ପୂତ ଗର୍ଭୁଁ ଯାର ଜନମ ଲଭିଣ,

Digitized by srujanika@gmail.com

ରୋପିଥିଲେ ଭବେ ବିଜୟ-ନିଶାଣ,
ବନ୍ଦେ ତାଂ ରତ୍ନପ୍ରସବିନୀମ୍ । ୭ ।

ଦିବା ନିଶି ଯେହ୍ନୁ ଅତି ସ୍ନେହଭରେ
ପାଳୁଅଛୁ ନିଜ ସନ୍ତାନ ସକଳେ,
ବିପଦେ ଆପଦେ ଆବର ଅଞ୍ଚଳେ,
ବନ୍ଦେ ତାଂ ଶାନ୍ତିବିଧାୟିନୀମ୍ । ୮ ।

ବିଶ୍ୱପତି-ପଦ ହୃଦେ ହୃଦେ ଧ୍ୟାୟି,
ଆସ ଭ୍ରାତୃଗଣେ ଏକମେଳ ହୋଇ,
ତ୍ରିଂଶ-କୋଟି-କଣ୍ଠେ ଏକତାନେ ଗାଇ,
"ବନ୍ଦେ ସ୍ନେହମୟୀ-ଜନନୀମ୍" । ୯ ।

ଗାଅରେ ସମୀର କାନନ ଖେଳାଇ,
ଗାଅ ପ୍ରତିଧ୍ୱନି ଶଇଳ ଦୋଳାଇ,
ଗାଅ ନଦ ନଦୀ ସିନ୍ଧୁ ଉଚ୍ଛୁଳାଇ,
"ବନ୍ଦେ ତୀର୍ଥମୟୀ-ଜନନୀମ୍" । ୧୦ ।



Digitized by srujanika@gmail.com

ଓଁ

୧ — "ଓଁ ତତ୍ ସତ୍"

୨ — "ଓଁ ଶାନ୍ତି ! ଶାନ୍ତି ! ! ଶାନ୍ତି ! ! !

୩ — "ବ୍ରହ୍ମକୃପାହି କେବଳଂ"

୪ — "ହରେର୍ନାମୈବ କେବଳଂ"

୫ — "ଯତୋଧର୍ମସ୍ତତୋଜୟଃ"

୬ — "ଅହିଂସା ପରମୋ ଧର୍ମଃ"

୭ — "ନାସ୍ତି ସତ୍ୟସମୋଧର୍ମଃ"

୮ — "ଜୀବେ ମୈତ୍ରୀ"

୯ — "ସତ୍ୟମେବ ଜୟତେ"

୧୦ — "ବନ୍ଦେ ମାତରମ୍"

୧୧ — "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

୧୨ — "ଦେଶାର୍ଥଂ ଦେହମୁତ୍ସୃଜେତ୍"

୧୩ — "ସିଦ୍ଧମିତି ଦୃଢ଼ବ୍ରତଃ"

୧୪ — "କୀର୍ତ୍ତିର୍ଯସ୍ୟ ସ ଜୀବତି"

୧୫ — "ଯତ୍ନେନ କମସାଧ୍ୟମ୍"

Digitized by srujanika@gmail.com

୧୬ — "ବାଣିଜ୍ୟେ ବସତେ ଲକ୍ଷ୍ମୀଃ"
୧୭ — "ଗଚ୍ଛଂ ଖଚ୍ଛତି ସବ୍ଧୂରଂ"
୧୮ — "ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍"
୧୯ — "ଧର୍ମୋ ରକ୍ଷତି ଧାର୍ମିକଂ"
୨୦ — "ବ୍ରହ୍ମଚର୍ଯ୍ୟପ୍ରତିଷ୍ଠାୟାଂ ବୀର୍ଯ୍ୟଲାଭଃ"
୨୧ — "ଆତ୍ମତେ୍ୟାଃ ଶ୍ରିୟମନ୍ନ ଚ୍ଛେତ୍"
୨୨ — "ଧନୈଃ ସର୍ବଂ ସୁସିଦ୍ଧତେ"
୨୩ — "ବହ୍ଵାଡ଼ମ୍ବର ଲଘୁକ୍ରିୟା"
୨୪ — "ଗତସ୍ୟ ଶୋଚନା ନାସ୍ତି"
୨୫ — ଦୁଃଖ ଭୋଗହିଁ ସୌଭାଗ୍ୟର ମୂଳ
୨୬ — ଶ୍ରମହିଁ ସଫଳତାର ନିଦାନ
୨୭ — ଆଳସ୍ୟ ସର୍ବ ଦୋଷର ଆକର
୨୮ — ନମ୍ରତା ସକଳ ଗୁଣର ଭିତ୍ତି
୨୯ — ସାଧୁତାହିଁ ଉତ୍କୃଷ୍ଟ କୌଶଳ
୩୦ — ପ୍ରତ୍ୟୁତ୍ପନ୍ନ ଉଦ୍ଭାବନାର ପ୍ରସୂତି
୩୧ — କ୍ଷମାହିଁ ସର୍ବୋତ୍କୃଷ୍ଟ ପ୍ରତିହିଂସା

Digitized by srujanika@gmail.com

୩୨ — ସହିଷ୍ଣୁତା ସକଳ କ୍ଳେଶର ମହୌଷଧ

୩୩ — ପ୍ରାଚୁର୍ଯ୍ୟ ଅଭାବର ଉତ୍ପାଦକ

୩୪ — ସଂଯମହିଁ ଉତ୍କୃଷ୍ଟ ଔଷଧ

୩୫ — ଅବଜ୍ଞାହିଁ ମିତ୍ର ଭର୍ତ୍ସନା

୩୬ — ଧନ ଅପେକ୍ଷା ସୁନାମ ଉତ୍କୃଷ୍ଟ

୩୭ — ଆଡ଼ମ୍ବର ଅପେକ୍ଷା ପ୍ରୟୋଜନ ଶ୍ରେଷ୍ଠତର

୩୮ — ପ୍ରତିହିଂସା ନୀଚୋଚିତ, କ୍ଷମା ସ୍ୱର୍ଗୀୟ

୩୯ — କୁଶିକ୍ଷା ଅପେକ୍ଷା ଅଶିକ୍ଷା ଭଲ

୪୦ — ଧର୍ମପଥହିଁ ଶାନ୍ତିମୟ

୪୧ — "ମରଣଂ ବିନ୍ଦୁପାତେନ
ଜୀବନଂ ବିନ୍ଦୁ ଧାରଣାତ୍"

୪୨ — "ଶରୀରଂ ବା ପାତୟେତ୍
କାର୍ଯ୍ୟଂ ବା ସାଧୟେତ୍"

୪୩ — "ଦେଶସୁଖେ, ଦେଶ ହିତେ
ଦିଅ ଆତ୍ମବଳ ।"

Digitized by srujanika@gmail.com

୪୪ — "ଜାଗ ଜାଗ, ଜାଗ ଜାଗ
ଜନ୍ମଭୂମି ସେବାରେ ।"

୪୫ — "ମାଗ ବୀର୍ଯ୍ୟ, ମାଗ ଧୈର୍ଯ୍ୟ
ବିଶ୍ୱରାଜ ଦୁଆରେ ।"

୪୬ — "କର କାର୍ଯ୍ୟ, ହୁଅ ଆର୍ଯ୍ୟ
କର୍ମଭୂମି-ସଂସାରେ ।"

୪୭ — "ଆଗେ ଚାଲ, ଆଗେ ଚାଲ
ଥାଉ ଥାଉ ସମୟ ।"

୪୮ — ମିଳି ଭାଇ ପରସ୍ପର
ମାତୃଭୂମି ସେବା କର ।

୪୯ — ପୁତ୍ର ସର୍ବେ ଭାଇ ଭାଇ,
ଝାସ ଦେଲ ଦେଶପାଇଁ ।

୫୦ — ସାଧନାରେ ହୁଏ ସିଦ୍ଧି,
ଦିଶୁ ସଦା ଏହି ବୁଦ୍ଧି ।

୫୧ — ନିଜ ସ୍ୱାର୍ଥ ମନୁ ମୁଞ୍ଚ,
ପରପାଇଁ ଭବେ ବଞ୍ଚ ।

Digitized by srujanika@gmail.com

୫୨ — ଯାହା ଦେଶ ହିତ କର୍ମ
ଧରାଧାମେ ତାହା ଧର୍ମ ।

୫୩ — ଆର୍ଯ୍ୟବଂଶେ ହୋଇ ଜନ୍ମ
ନ ହୁଅନ୍ତି ଜଡ଼ସମ ।

୫୪ — ଉଚ୍ଚେ ଭକ୍ତି ନୀଚେ ସ୍ନେହ
ସମଠାରେ ପ୍ରେମ ବନ୍ଧ ।

୫୫ — ସୁଖାଲସ୍ୟ ପରିହର,
ସଦା ହିତ କର୍ମ କର ।

୫୬ — ବର ମାଗି ବଗେଶ୍ୱରେ
ଧର କର୍ମ-ଅସି କରେ ।

୫୭ — ଦେଖିବ କି କର୍ମବୀର ?
ଯାଅ ତେବେ ସିନ୍ଧୁପାର ।

୫୮ — ହୁଅ କର୍ମ-ଯୋଗେ ଯୋଗୀ,
ଜାତି ନୋହୁ ଦୋଷଭାଗୀ ।

୫୯ — ଧନ ଯେବେ ଅଛି ହାତେ,
ଅର୍ପି ଦିଅ ଦେଶହିତେ ।

Digitized by srujanika@gmail.com

୬୦ — କାର୍ଯ୍ୟକ୍ଷେତ୍ରେ ଦେଇ ପ୍ରାଣ
ରଖ ପୂର୍ବ-ପିତୃ-ଠାଣ ।

୬୧ — ଭୁଲ ନୀଚ ସ୍ୱାର୍ଥପଣ,
ଦେଶହିତେ ଦିଅ ମନ ।

୬୨ — ଜାତି-ସ୍ୱାର୍ଥ ଅଛୁ ଯହିଁ,
ନିଜ-ସ୍ୱାର୍ଥ ଭଲ ତହିଁ ।

୬୩ — ଯେଝା ଧନ ପ୍ରାଣ ମନ
ଦେଶେ କର ସମର୍ପଣ ।

୬୪ — ଆଳ ଏକତାର ବ୍ରତ
ଦେଶ ହିତେ ହୁଅ ରତ ।

୬୫ — "ଏକତା" ପରମ ସୁଧା,
ହର ନେବ ଜାତି-କ୍ଷୁଧା ।

୬୬ — ଏକତାରେ ଦେଶୋନ୍ନତି,
ଅନୈକ୍ୟରେ ଅବନତି ।

୬୭ — ଭାବୀ ଶୁଭ ଇଚ୍ଛ ଯେବେ,
ମାତି ଉଠ ଜୟରବେ ।

Digitized by srujanika@gmail.com

୬୮ — ମାତୃଭୂମି-ସେବା-ଦୀକ୍ଷା ।
ଘେନ ଭାଇ ! ଏହି ଭିକ୍ଷା

୬୯ — ମାତୃପଦେ ପ୍ରେମାଞ୍ଜଳି
ଢାଳ ଦିଅ ସବେ ମିଳି ।

୭୦ — ଫିଙ୍ଗି ଦୂରେ ହିଂସା ରାଗି
ମିଳିଯାଅ ଦେଶବାସୀ

୭୧ — ଜଗତଟି କର୍ମ-ମଞ୍ଚ,
ଯହିଁ କର୍ମ, ତହିଁ ଜୟ ।

୭୨ — ସ୍ୱଦେଶ-ହିତ ସାଧନେ
ତ୍ୟାଗ ଭାଇ ପ୍ରାଣ ପଣେ ।

୭୩ — ଏକତା ମଧୁ ସମାନ,
ସୁଖେ ମିଳି କର ପାନ ।

୭୪ — ଦେଶହିତେ ଦିବା ରାତି
ଦିଅ ନିଜ କ୍ଷୁଦ୍ର ଶକ୍ତି ।

୭୫ — ନିଜ ସ୍ୱାର୍ଥେ ମାତି ଭାଇ
ଦେଶ ସ୍ୱାର୍ଥ ଭୁଲ ନାହିଁ ।

Digitized by srujanika@gmail.com

୭୬ — ସ୍ତୁର ନଜ ପୂଜ୍ୟ ଯଶ
କାର୍ଯ୍ୟକ୍ଷେତ୍ରେ ଧାଇଁ ପଶ ।

୭୭ — କାର୍ଯ୍ୟ କର ଆର୍ଯ୍ୟ ହୁଅ,
ଜଗତରେ ପୂଜା ପାଅ ।

୭୮ — ଦେଖ କର୍ମ-ଯୁଗ-ରୀତି,
କର୍ମେ ରତ ସବୁ ଜାତି ।

୭୯ — ଉଜାଡକ ହୋଇ ଭାଇ
ଦେଶ କାମେ ଆସ ଧାଇଁ ।

୮୦ — ମାତୃଭୂମି ସେବା ବିନା
ନ ମିଳିବ ଦାନା କନା ।

୮୧ — ଗଲେ ଯଦି ଜୀବ ଯାଉ,
ପଣ ରଖ କାର୍ଯ୍ୟ ହେଉ ।

୮୨ — ହିଂସା ରାଗ ଅହଙ୍କାର
କାର୍ଯ୍ୟକ୍ଷେତ୍ରେ କର ଦୂର ।

୮୩ — କାର୍ଯ୍ୟକ୍ଷେତ୍ରେ ଧନ ମନ
ଖୋଜାଖୋଜି ଚିରଦିନ ।

Digitized by srujanika@gmail.com

୮୪ — ମନ ଥିଲେ ଧନ ବଳେ
ଆସି ମିଳେ ପଦ ତଳେ ।

୮୫ — ଯତ୍ନ କଲେ ରତ୍ନ ମିଳେ,
କଥା ଅଛୁ କାଳେ କାଳେ ।

୮୬ — ସଚ୍ଚାରିତ୍ର୍ୟ ଥିଲେ ସଚ୍ଚେଷ୍ଟା
ନ ହୁଏ ଲକ୍ଷ ଭ୍ରଷ୍ଟା ।

୮୭ — ଜ୍ଞାନୀ ହେଲେ ମ୍ରିୟମାଣ
କେ ରଖିବ ଜାତି-ଠାଣ ?

୮୮ — ନାହିଁ ଯାର ହିତେ ମନ,
ଧିକ ତାର ଜ୍ଞାନପଣ !

୮୯ — କାର୍ଯ୍ୟକ୍ଷେତ୍ରେ ଅର୍ଥ ମୂଳ,
ମାଗି ଯାଚ କର ତୂଳ ।

୯୦ — ମନ ଯଦି କରେ ମନ,
ଅସାଧ୍ୟ ହୁଏ ସାଧନ ।

୯୧ — ସତ୍ୟ ନିର୍ଭୀକ ଭୟ
ତେଜ, କ୍ଷେତ୍ରେ ହେବ ଜୟ ।

Digitized by srujanika@gmail.com

୫୨— ଫେଳି ଦୂରେ ବୃଥା ଖେଳ
କର୍ମ କର, ଗଲ୍ଲ ବେଳ ।

୫୩— ଜ୍ଞାନ ସର୍ବ କାର୍ଯ୍ୟ ମୂଳ,
ତାକୁ ଆଗେ କର ଠୂଳ ।

୫୪— ଯେତେଣେ ଇଚ୍ଛା ତେତେଣେ ଅନା,
ଲଗିଛି କର୍ମ-ସାଧନା ।

୫୫— ସୁଖ ଦୁଃଖ ଗଳ୍ପ କାଟିଲି
ଦେଶ କଥା ପଡ଼ୁ ଭିଲେ ।

୫୬— କ୍ଷୁଦ୍ର କ୍ଷେତ୍ରେ ଧର କୋଣେ
କାର୍ଯ୍ୟ କଲେ ହେବ ଜଣେ ।

୫୭— ଜନ୍ମଭୂମି-ପୂଜା ପାଇଁ
ଧନ ପ୍ରାଣ ଦିଅ ଢାଳି ।

୫୮— ଗାଅ ଏକତାର ଜୟ,
ଜାତୀୟ ଗୌରବ ଜୟ ।

୫୯— ପ୍ରଭୁପଦେ ରଖି ଚିତ୍ତ ।
ଧର ମାତୃ-ହିତ-ବ୍ରତ ।

Digitized by srujanika@gmail.com

୧୦୦—— ମାତୃସେବା କର ସାର,
ନୋହିଲେ ଜୀବନ ଛାର ।

୧୦୧—— ମାତୃ-ପଦେ ଆତ୍ମଦାନ
କରଥାଏ ସୁସନ୍ତାନ ।

୧୦୨—— ମାତୃ-ପଦେ ରଖି ଚିତ୍ତ
ଗାଅ ମାତୃ-ଯଶୋଗୀତ ।

୧୦୩ —— ମାତୃଭୂମି କଲେ ସେବା
ଦଶ ଜଣେ ଜଣେ ହେବା ।

୧୦୪ —— ହୋଇ କାର୍ଯ୍ୟ-ପ୍ରିୟ-ଜାତି
ବଢ଼ା ପୂର୍ବ-ପିତୃ-ଖ୍ୟାତି ।

୧୦୫ —— ସାମ୍ୟ ଭାବେ ଦେଖ ଭାଇ,
ଭାଇ ଭାଇ ଭେଦ କାହିଁ ?

୧୦୬ —— ନଜ ଗୋଡ଼େ ହୋଇ ଛିଡ଼ା
ଜାତୀୟ-ଗୌରବ ବଢ଼ା ।

୧୦୭ —— କାର୍ଯ୍ୟ କର କଥା କହ,
ବାଧା ବିଘ୍ନ ସବୁ ସହ ।

Digitized by srujanika@gmail.com

୧୦୮ — ବାକ୍ୟ କାର୍ଯ୍ୟ କର ଏକ
ରଖ ଆଗ ନକ୍ତ ଠେକ ।

୧୦୯ — ହୋଇ ଆର୍ଯ୍ୟବଂଶଧର
ଅନାର୍ଯ୍ୟ ବୃତ୍ତି ନ କର ।

୧୧୦ — ସମସ୍ତେ ଭଜିଲେ ଅମ୍ବା
ଦେଶରୁ ଘୁଞ୍ଚିବ କଷ୍ଟା ।

୧୧୧ — ଯାଉ ଅବା ରହୁ ପ୍ରାଣ,
ଥାଉ କୁଳ ଜାତି-ଠାଣ ।

୧୧୨ — ଆଳସ୍ୟ-ଦୁଷ୍ଟ-ଅସୁରେ
ପଦାଘାତେ ଫିଙ୍ଗ ଦୂରେ ।

୧୧୩ — ସତ୍କାର୍ଯ୍ୟ କରେ ଯେ ନିତି,
ପାଏ ସେ ଈଶ୍ୱରପ୍ରୀତି ।

୧୧୪ — ଧୈର୍ଯ୍ୟ ଧରି କାର୍ଯ୍ୟ କଲେ
ଭାଗ୍ୟ-ବୃକ୍ଷ ଫଳେ ଭଲେ ।

୧୧୫ — ପରପାଇଁ ନରପ୍ରାଣ,
ଥାଉ ମନେ ଏହି ଠାଣ ।

Digitized by srujanika@gmail.com

୧୧୬ — ବେଳ ଥାଉଁ ଉଠି ବସ,
ବେଳ ଗଲେ ସର୍ବନାଶ ।

୧୧୭ — ସାବଧାନ ହୁଅ ଗୃହୀ,
ଦେଶଠାରେ ନୁହ ଋଣୀ ।

୧୧୮ — ସାହସ ମାନବଧର୍ମ,
ଭୀରୁତା ଶୃଗାଳକର୍ମ !

୧୧୯ — ନିଜ କାର୍ଯ୍ୟ ନିଜେ କଲେ
ଫଳ ଦେବେ ପ୍ରଭୁ ବଲେ ।

୧୨୦ — ପରିଶ୍ରମେ ଥିଲେ ରତ
ମହାଲକ୍ଷ୍ମୀ ଅନୁଗତ ।

୧୨୧ — ଚେଷ୍ଟା କର ଅନିବାର୍ଯ୍ୟ
ହେବ ଦିନେ କୃତକାର୍ଯ୍ୟ ।

୧୨୨ — କର୍ମହୀନ ଦେହ ଧରି
ନ କର ପୃଥିବୀ ଭାରି ।

୧୨୩ — କ୍ଷଣିକ ସୁଖରେ କେହି
ଚିର-ଦୁଃଖ କିଣ ନାହିଁ ।

Digitized by srujanika@gmail.com

୧୨୪ — ଖଡ଼ଗୁଁ ଲେଖନୀ ଠାଣ,
ବନା ରକ୍ତେ ନଏ ପ୍ରାଣ ।

୧୨୫ — ସ୍ୱଜନେ ନ ଥିଲେ ପ୍ରୀତି,
କାହୁଁ ହେବ ପର ପ୍ରତି ?

୧୨୬ — ବାର ବାର କ୍ଷୁଦ୍ର ଘୋଟେ
ଭୀମ ବନ୍ଧ ଭୂମେ ଲୋଟେ ।

୧୨୭ — ଉପଯୁକ୍ତ ହେବ ଯେବେ
ଇଷ୍ଟଙ୍କୁ ପାଇବ ତେବେ ।

୧୨୮ — ଅଳସେ ଯେ ସବୁ ଭାର,
ଶ୍ରମଶୀଳେ ସୋଲ ପର ।

୧୨୯ — କର ପାର ଆଜି ଯାହା
କାଲିକ ନ ରଖ ତାହା ।

୧୩୦ — ଅମୂଲ୍ୟ ସମୟ ଯାଇ
ଗଲେ ଥରେ ନ ମିଳଇ ।

୧୩୧ — ଦରଦ୍ରତା ଆଳସ୍ୟର
ଅଟେ ଚର ସହଚର ।

Digitized by srujanika@gmail.com

୧୩୨ — ଭ୍ରାତୃପ୍ରେମ ଘରେ ଘରେ
ଲୀଳା କରୁ ଆନନ୍ଦରେ ।

୧୩୩ — ଧର ସର୍ବେ ନବ ବଳ
କାର୍ଯ୍ୟକ୍ଷେତ୍ରେ ହୁଅ ଠୁଳ ।

୧୩୪ — ଧର୍ମ୍ମଧାମେ କର୍ମ-ଯୋଗ
ଦୂର କରେ ଦୁଃଖ ରୋଗ ।

୧୩୫ — ପରନିନ୍ଦା ମହାପାପ
ପରଦ୍ରୋହେ ବ୍ରହ୍ମଶାପ ।

୧୩୬ — ସତ୍କାର୍ଯ୍ୟର ପରିମଳ
କ୍ଷଣେ ବ୍ୟାପେ ଭୂମଣ୍ଡଳ ।

୧୩୭ — ହେଉ କାର୍ଯ୍ୟର ସାଧନ,
ନତୁବା ଦେହ ପାତନ ।

୧୩୮ — କର୍ମମୟ ନାରାୟଣେ
କର୍ମକ୍ଷେତ୍ରେ ହେଜ କ୍ଷଣେ ।

୧୩୯ — ଯତନ ନ କଲେ ଘର
ରତନ ମିଳଇ କାହିଁ ?

Digitized by srujanika@gmail.com

୧୪୦ — ବାକ୍ୟ ନାରୀ, କାର୍ଯ୍ୟ ନର,
ମତ ଅଟେ ସାଧୁଙ୍କର ।

୧୪୧ — ବଡ଼ ସାନ ମିଳି ଯାଇ
ଦେଶ କାର୍ଯ୍ୟେ ଆସ ଧାଇଁ ।

୧୪୨ — ଦେଶ ପାଇଁ ଅଣ୍ଟା କସ,
ଯିବ ସବୁ ଲୋକ ଶୋଷ ।

୧୪୩ — ନୀରବ କର୍ମ ସାଧନ
ଅଟଇ ମହତ ଧନ ।

୧୪୪ — ମଶାଣିରେ ହେବ ଭେଟ,
ତେବେ କାହିଁ ଖଟେଖଟ ?

୧୪୫ — "ବିଦେଶୀ"କୁ ଦୂରେ ଫିଙ୍ଗି
ହୁଅ "ଦେଶୀ" ଅନୁରାଗୀ ।

୧୪୬ — ମନ ଥିଲେ, ଶକ୍ତିମତେ
ଦେବ ସ୍ୱାର୍ଥ ଦେଶ ହିତେ ।

୧୪୭ — ନିୟମ କରନ୍ତି ବନ୍ଧ,
ସାଧନାରେ ହୁଏ ସିଦ୍ଧି ।

Digitized by srujanika@gmail.com

୧୪୮ — ମାତୃ-ସେବା ଦେଲେ ଛାଡ଼ି,
ଘରୁ ପର ଦେବେ ତଡ଼ି ।

୧୪୯ — ସମୟ, ଜୁଆର ଧାଇଁ
ନ ରହନ୍ତି କାହାପାଇଁ ।

୧୫୦ — ନୀଚ ଯଦି ଉଚ୍ଚ ଧାପେ
ସୁବୁଦ୍ଧି ଉଡ଼ାଏ ହସେ !

୧୫୧—ଦଳ ଦୁଷ୍ଟ-ରିପୁଦଳେ
କର୍ମ କର ଧର୍ମବଳେ ।

୧୫୨—ରକ୍ଷା କର ଦୀନ ଜନେ,
କର୍ମ କର କାୟମନେ ।

୧୫୩ — ଆଗେ ଭାବ ନିଜ ମନେ,
ପରେ ପୁଚ୍ଛ ଅନ୍ୟ ଜନେ ।

୧୫୪—ପର ପ୍ରତି ହେଲେ ସାହା,
ସାହା ହେବେ ବନ୍ଧୁ-ନାହା ।

୧୫୫— ନିସା-ବେଶ୍ୟା-ପଶା ବୃତ୍ତି
କଲେ ବୁଡ଼େ ସୁକୃତି ।

Digitized by srujanika@gmail.com

୧୫୬—ଯିବ ଯେବେ ଛାଡି ଭବ,
ଭାବ ସଙ୍ଗେ କସ ନେବ ।

୧୫୭—ନିଦ୍ରା-ସୁଖ ଇଚ୍ଛାମତେ
ଲଭିବଟି ଯୁର-ଗାତେ ।

୧୫୮—ଅଜ୍ଞାତ ଯାହା ଜାଣର
ପରଠାରୁ ଶିକ୍ଷା କର ।

୧୫୯—ଦିଅ ଆଦ୍ରେ ପ୍ରେମସିନ୍ଧୁ
ଦୀନ-ଜନେ ଦୟା-ବିନ୍ଦୁ ।

୧୬୦—ଭବେ ଅଛି ଯେତେ ଧନ,
ସନ୍ତୋଷହିଁ ଶ୍ରେଷ୍ଠତମ ।

୧୬୧—ଅବିରତ ବିନ୍ଦୁପାତେ
ଶିଳା ଚୂର୍ଣ୍ଣ ଏ ଜଗତେ ।

୧୬୨—ସହାୟ ଯେହୁ ବିପଦେ,
ସେହୁ ଲେଖା ବନ୍ଧୁ ପଦେ ।

୧୬୩—ସାମାନ୍ୟ ଛିଦ୍ରରେ ବେଳେ
ବୋଇତ ବୁଡଇ ଜଳେ ।

Digitized by srujanika@gmail.com

୧୬୪—ଅଲ୍ପଭାଷୀ ସାଧୁ ଲୋକ,
ମୂଢ଼ ହୁଏ ଧଳଚଳ !

୧୬୫—ସୂତାକୁ ମାଜିଲେ ସରୁ,
କଥାକୁ ମାଜିଲେ ଗରୁ ।

୧୬୬—ସବୁଠୁଁ ଫମ୍ପା ମାଠିଆ
ଅଠେଇ ବଡ଼ପାଟିଆ !

୧୬୭—ସଦା ଭୂମ୍ୟଭାସକ୍ତ ଯେହୁ
ଭୂତାବସ୍ଥା ଜାଣ ସେହୁ ।

୧୬୮—କାଲର ଅଦମ୍ୟ ଗବ
ମୃତ୍ୟୁ ଏକା କରେ ଖବ ।

୧୬୯—ବ୍ୟଥାର ଅଉଷଧ
ଆଶା, ଭରସା, ପ୍ରବୋଧ ।

୧୭୦—ଅହଂକାର ନାହିଁ ବୋଲି
ନ ହୁଅନ୍ତୁ ଅହଂକାରୀ ।

୧୭୧—ସକଳେ ସମାନ ଜାଣ,
ସହଜେ ପାଇବ ତ୍ରାଣ ।

Digitized by srujanika@gmail.com

୧୭୨ — ପବିତ୍ର ପ୍ରେମର ଫଳ
ସବୁ ଦିନେ ସୁରସାଳ ।

୧୭୩ — ଦୟା, ଦାକ୍ଷିଣ୍ୟ, ପବିତ୍ରତା,
ଆଦର୍ଶ ଏ ତିନି ଦେବତା ।

୧୭୪ — କେବଳ ଭୋଜନ, ଶୟନ
ନୁହଇ ମାନବର ଧର୍ମ ।

୧୭୫ — ନିଜ ଅନ୍ତର ଶାନ୍ତି ଅର୍ଥେ
ସୁକର୍ମ କର ଅନୁରତେ ।

୧୭୬ — ସବୁ ସୁକୃତି ମାନବର
ପୋଡ଼ି ଦିଅଇ ଅହଂକାର ।

୧୭୭ — ଦିଓନ୍ତି ଭାଇ ସୁଖ ଦୁଃଖ,
କାହିଁରେ ନ ହୁଅ ବିମୁଖ ।

୧୭୮ — ନ କର ମନେ ଅଭିମାନ
ନିଜକୁ ମଣ ସଦା ସାନ ।

୧୭୯ — ବଡ଼ ହେବାକୁ ଯେବେ ଚାହଁ,
ସାନ ହୋଇଣ ପଛେ ଥାଅ ।

Digitized by srujanika@gmail.com

୧୮୦ — ମାନବ ସଂସାରର ସାର,
ବିଦ୍ୟା ଓ ମନ ହେତୁ ତାର ।

୧୮୧ — ନିଃସ୍ୱାର୍ଥ ଭାବେ କାର୍ଯ୍ୟ କର,
ଫଳକୁ ଅପେକ୍ଷା ନ କର ।

୧୮୨ — ଆଶା ଅଟଇ କାର୍ଯ୍ୟକାରୀ,
ମାନବ ତାର ସହଚରୀ ।

୧୮୩ — ବିଶ୍ୱାସ ବିନା କର୍ମ ଯେତେ
ସଫଳ ନୋହେ କଦାଚିତେ ।

୧୮୪ — ନିଯୁକ୍ତ କର୍ମେ ଥିଲେ ମନ,
ପାଖେ ନ ପଶେ ପ୍ରଲୋଭନ ।

୧୮୫ — କୁସଙ୍ଗଠାରୁ ସୁନିଶ୍ଚୟ
ବିଜନ-ବାସ ଅଟେ ଶ୍ରେୟ

୧୮୬ — ସଂକୀର୍ଣ୍ଣ ବୃତ୍ତି ପରିହର,
ଉଦାର ନୀତି ଅନୁସର ।

୧୮୭ — ସଂକୀର୍ଣ୍ଣ ମତ ଯାହା ଅଛି
ଦେଶରୁ ତାହା ଦିଅ ପୋଛି ।

Digitized by srujanika@gmail.com

୧୮୮ — "ଧନ୍ୟ ଜୀବନ ଏ ଜଗତେ
ଯେ ଦେହ ଧରେ ପ୍ରାଣୀହିତେ ।"

୧୮୯ — "ଯେ ଜନ ଅଟେ କୀର୍ତ୍ତିମନ୍ତ
ଜୀବନ ତାହାର ଅନନ୍ତ ।"

୧୯୦ — "ସର୍ବେ ଚଳିବେ କାଳବଳେ
ଯଶ ରହିବ ମହୀତଳେ ।"

୧୯୧ — "କର୍ମେ ପ୍ରାଣିଏ ଆତଯାତ
କାଳର କ୍ରୀଡ଼ା ଏ ଜଗତ ।"

୧୯୨ — "ପ୍ରାଣିର ଭଲ ମନ୍ଦ ବାଣୀ
ମରଣକାଳେ ତାହା ଜାଣି ।"

୧୯୩ — "ସୁକର୍ମେ ସାଧୁସଙ୍ଗ ମିଳଇ
କୁକର୍ମେ ଅସାଧୁ ମିଳଇ ।"

୧୯୪ — "ସତ୍ୟ ଯେ ଶାନ୍ତ ଦୟା କ୍ଷମା,
ଏ ଗୁଣ ଈଶ୍ୱର ମହିମା ।"

୧୯୫ — "ଉପାୟ କର ନାନା ମତେ
ଫଳିବ କର୍ମର ଆୟତ୍ତେ ।"

Digitized by srujanika@gmail.com

୧୯୬ — "ଧନ ଅର୍ଜିଣ ଧର୍ମ କର,
ଧର୍ମେ ପ୍ରାପତ ନରହର ।"

୧୯୭ — "ମର୍ତ୍ତ୍ୟମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ ।"

୧୯୮ — "ସମତା ଦୃଷ୍ଟି ସତ୍ୟ ଭାଷା
ଜଗତ୍ୟ କରବ ଏଣେ ଆଶା ।"

୧୯୯ — "ସମ ଦେଖିବ ସର୍ବ ଅଂଶେ
ଭେଦ ନ କର ଗୁଣଦୋଷେ ।"

୨୦୦ — "ଯେ ପୁଣ୍ୟ ଆପଣେ କରବ
କେବେହେଁ ପରେ ନ କହିବ ।"

୨୦୧ — "ଦୁଃଖେ ସଞ୍ଚିତ ଯେତେ ଧନ
ସେ ନୋହେ ସୁଖେ ପ୍ରୟୋଜନ ।"

୨୦୨ — "ନର୍ଲୋକେ ସର୍ବ ସଙ୍ଗେ ଥିବ,
କର୍ତ୍ତବ୍ୟ କର୍ମହିଁ କରବ ।"

୨୦୩ — "ଏ ଦେହ ଈଶ୍ୱର ଅର୍ପିତ
ସ୍ୱକର୍ମପଥେ ଅତଯାତ ।"

Digitized by srujanika@gmail.com

୨୦୪ — "ନିଜର ସ୍ୱାର୍ଥେ ମତ୍ତ ହୋଇ
ନ ପୀଡ଼ ଅନ୍ୟେ ହିଂସା ବହି ।"

୨୦୫ — "ପ୍ରାଣୀର ହିତେ ସର୍ବ ଦେହ
ତାହାକୁ ବୋଲି ପୁଣ୍ୟଦେହ ।"

୨୦୬ — "ସମଦରଶୀ ଚକ୍ଷୁ ଯାର
ମିତ୍ର ଅରିର ନାହିଁ ତାର ।"

୨୦୭ — "ଆତ୍ମ-ପ୍ରଶଂସା ଯେ କରନ୍ତି
ସେ ପ୍ରାଣୀ ନରକେ ପଡ଼ନ୍ତି ।"

୨୦୮ — "ଶରୀର କର୍ମ ମାତ୍ର ଯେତେ
ବାନ୍ଧେ ଜନ୍ତବ ଲୋକମତେ ।"

୨୦୯ — "ଅମୃତ ବନସ୍ତ୍ୱ ବଚନ
କହି ତୋଷିବ ପ୍ରାଣୀ ମନ ।"

୨୧୦ — "ଯେ ଫଳଲୋଭେ କରେ କର୍ମ
କର୍ମେ ହୁଏ ତା ମତିଭ୍ରମ ।"

୨୧୧ — "ଜନ୍ମ ଯୌବନ ଜରା ମୃତ୍ୟୁ
ଏ ଗୃହ ଦୁଃଖ-ସୁଖ-ହେତୁ ।"

Digitized by srujanika@gmail.com

୨୧୨ — "ବନ୍ଧ୍ୟା ଯାହାର ଲୋଚନ
ହରଇ ଆମ୍ଭ ବନ୍ଧି ଜ୍ଞାନ ।"

୨୧୩ — "କେବେହେଁ ନୁହ ଅଭିମାନୀ
ଆମ୍ଭ ପରରେ ତତ୍ତ୍ୱଜ୍ଞାନୀ ।"

୨୧୪ — "ଧର୍ମ ଅଧର୍ମ କୂଟବୁଦ୍ଧି
ଏମାନ କାଠ ଚନ୍ଦ୍ର ଶୋଧି ।"

୨୧୫ — "ନିଜ ସ୍ୱଧର୍ମେ ଯେବେ ଜିଣି
ଐଶ୍ୱର୍ଯ୍ୟ ବୋଲି ତାକୁ ଭଣି ।"

୨୧୬ — "ସକଳ ଦେହେ ଆତ୍ମା ଏକ
ଅଜ୍ଞାନୀ ଜନକୁ ଅନେକ ।"

୨୧୭ — "ସଂସାରେ ସୁଖ ଦୁଃଖ ବେନି
ମିଳଇ ନିଜ କର୍ମ ଘେନି ।"

୨୧୮ — "ସମେ ଯେ ଦୁଃଖ ସୁଖ ମଣି
ସେ ମହାସୁଖୀ ଜନେ୍ୟ ଭଣି ।"

୨୧୯ — "ଜନତେ ବାମା-ଭୋଗ-ସୁଖ
ତାହାକୁ ବୋଲି ମହାଦୁଃଖ ।"

Digitized by srujanika@gmail.com

୨୨୦ — "କର୍ମରୁ ବାସନା ସମ୍ଭୂତ,
ତେଣୁଟି ବନ୍ଧ ଏ ଜଗତ ।"

୨୨୧ — "କର୍ମବାସନା-ରଜ୍ଜୁବଳେ
ପ୍ରାଣୀ ଭ୍ରମନ୍ତି ଏ ଶଯ୍ୟତଳେ ।"

୨୨୨ — "ଦେହ ବହିଲେ ନଶ୍ୱର ମତ,
ମରଣ ଛରେ କମ୍ପା ଉର ?"

୨୨୩ — "ବୁଦ୍ଧି ବିବେକ ଜ୍ଞାନବଳେ
ମରଣ ଜିଣି ପାର ହେଲେ ।"

୨୨୪ — "କପଟତ୍ୟାଗ ଶମ ଦମ
ଏଆଦି ବ୍ରହ୍ମଚର୍ଯ୍ୟ ଧର୍ମ ।"

୨୨୫ — "ଦଣ୍ଡିବା ଶକ୍ତି ଯାର ଥାଇ
ସେ ପୁଣି କ୍ଷମା ଆଚରଇ ।"

୨୨୬ — "ହରିବିମୁଖ ଯେଉଁ ପ୍ରାଣୀ
ନ ତରେ ଭବତରଙ୍ଗିଣୀ ।"

୨୨୭ — "କର୍ମଯୋଗରେ କ୍ଷୁଦ୍ର ବଡ଼,
କର୍ମବିହୀନେ ପ୍ରାଣୀ ଜଡ଼ ।"

Digitized by srujanika@gmail.com

୧୨୮ — "ହେଉ ପଛକେ ସେ ନିକୃଷ୍ଟ
ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।"

୧୨୯ — "ସାଧୁଙ୍କ ସଞ୍ଚିତ ଜୀବନ
ପରାର୍ଥେ ହୁଏ ପ୍ରୟୋଜନ ।"

୧୩୦ — "ସ୍ୱକର୍ମ ଫଳ ଭୁଞ୍ଜେ ଲୋକ
ହେବ କେବଳ ଉପଲକ୍ଷ ।"

୧୩୧ — "କହୁ କଥାରେ ପାଅ ବ୍ୟଥା,
କପାଁଇ କହ କହୁ କଥା ?"

୧୩୨ — "ବଶ ଯେ କରଛୁ ମନକୁ
ସେ ଜିଣି ପାରେ ଜଗତକୁ ।"

୧୩୩ — "ନ ଥିଲେ ହିତାହିତ ଜ୍ଞାନ
ତୁମ୍ଭେହିଁ ତୁମ୍ଭ ଶତ୍ରୁ ଜାଣ ।"

୧୩୪ — "କର୍ମ କର, କର୍ମହିଁ ଜୀବନ,
ଅଳସତା ଜୀବନ୍ତ ମରଣ ।"

୧୩୫ — "କର୍ମ କର, ମାନବ ଜୀବନ
ନିରର୍ଥକ ନୁହେ କଦାଚନ ।"

Digitized by srujanika@gmail.com

୧୩୬ — "କର୍ମ କର, କିନ୍ତୁ ସାବଧାନ
ପର ଛିଦ୍ର ନ କର ସନ୍ଧାନ ।"

୧୩୭ — "ଧାତୃଭୂବେ ଦେଖେ ଯେ ମାନବ
ଆର୍ଯ୍ୟ ଆଖ୍ୟା ତାଠାରେ ସମ୍ଭବ ।"

୧୩୮ — "ବିନା ଶ୍ରମେ ଯତ୍ନେ କିଏ ହେବ ପାର
ଦୁସ୍ତର ଅନନ୍ତ ଭବପାରାବାର ।"

୧୩୯ — "ନୁହେ କେବେ ଚର ପ୍ରିୟ ବସ୍ତୁଗଣ,
ସଖା ମାତ୍ର ଏକା ଶ୍ରୀହରିଚରଣ ।"

୧୪୦ — "ବାଜୁ ମିଳନର ଶୁଭ ଶଙ୍ଖଧ୍ୱନି,
ଜାଗୁ ଆନନ୍ଦରେ ଉତ୍କଳ ଧରଣୀ ।"

୧୪୧ — "ଜାଗ ହେ ସରବେ ଉତ୍କଳସନ୍ତାନେ
ଏକତାର ମନ୍ତ୍ର ଜପି ପ୍ରାଣେ ପ୍ରାଣେ ।"

୧୪୨ — "ଧିକରେ ମାନବ ତୋର ଜନ୍ମ ଏ ମରତେ,
ହରଷ ବିଷାଦ ମଧ୍ୟେ ଝୁଲୁଛୁ କରତେ ।"

୧୪୩ — "ଅତୀତ ଗୌରବ, ଅତୀତ ବିଭବ
ପଡୁ ନାହିଁ କାହା ମନେ ?"

Digitized by srujanika@gmail.com

୧୪୪ — "ଛି ଛି ନୀଚ କଥା କହିବା କାହାକୁ
ପ୍ରତିଭାର ପୂଜା ଉତ୍କଳେ ନାହିଁ !"

୧୪୫ — "ନ ଦେଇ ଦୋଷ ଈଶ୍ୱରେ, ପଶ ହେ କର୍ମକ୍ଷେତ୍ରରେ
ଧର୍ମ ସହାୟ ନୁହନ୍ତ କରମ ବିନା ।"

୧୪୬ — "ଦଣ୍ଡକ କୀରତିବନ୍ତ, ଜୀବନ ମୂଲ୍ୟ ଅନନ୍ତ
ଯୁଗକ ଖାଲି ବଞ୍ଚିବା ଅକାରଣ ।"

୧୪୭ — ବାବୁଗିରି ଫଳେ ଚୁଲିକି ଯାଉ,
ଦେଶର କଉଡ଼ି ଦେଶରେ ଥାଉ ।

୧୪୮ — ବିଳାସ-ଆଳସ୍ୟ-ଶେଯରେ ଶୋଇ
"ଅକାଳ କୁଷ୍ମାଣ୍ଡ" ନ ହୁଅ କେହି ।

୧୪୯ — ଦେଶର ଯେବେହେ ଲୋଡ଼ ମଙ୍ଗଳ
ତହିଁ ପାଇଁ ଆଗେ ହୁଅ ପାଗଳ ।

୧୫୦ — ପର ଦେଲେ ଯହିଁ ଚଳଇ କାମ,
ବାବୁଗିରି ତହିଁ ନୁହେ କି ଭମ ?

୧୫୧ — ଦେଶ ଧନ ଦେଶେ ପାରିଲେ ରଖି
ଦାନା କନା ପାଇ ବଞ୍ଚିବେ ଦୁଃଖୀ ।

Digitized by srujanika@gmail.com

୧୫୨ — ନୀରବରେ କର ଦେଶର କାମ,
ବାହାରେ ଭୁଷ୍ଟଙ୍କୁ ନ ଦେଖା ଠମ ।

୧୫୩ — ଦେଶହିତ ଚିନ୍ତା ଛାଡ଼ିବ ଯେବେ,
ବାର ହୀନମାନ ହୋଇବ ତେବେ ।

୧୫୪ — ମାତୃଭୂମି ଯୋଡ଼େ ଶ୍ରେଷ୍ଠ ଫଳ:—
ଧର୍ମ, ଧନ, ବିଦ୍ୟା, ବାହୁର ବଳ ।

୧୫୫ — ବିଦେଶୀ ଦରବ ଛଇରେ ଭୁଲି
ଦେଶ ଧନ ଦୂରେ ନ ଦିଅ ଠେଲି ।

୧୫୬ — ଦେଶର ଦରବ କର ଆଦର,
ଘରର କଉଡ଼ି ନ ଖାଉ ପର ।

୧୫୭ — ବିଦେଶୀ ଦରବ ବିଦେଶେ ଛଡ଼,
"ମହାକାଳ" ଦେଖି ଭୁଲି ନ ପଡ଼ ।

୧୫୮ — ଦିବା ନିଶି ଭୁଞ୍ଜା ସ୍ୱାର୍ଥକୁ ଝୁର
ଘୁସୁର ସଙ୍ଗରେ ନ ହୁଅ ସର ।

୧୫୯ — ଆତ୍ମତ୍ୟାଗ ଅବା ଆତ୍ମପ୍ରସାର,
ଉନ୍ନତିପଥରେ ଏ ନୀତି ସାର ।

Digitized by srujanika@gmail.com

୧୬୦ — କାର୍ଯ୍ୟରେ ସଂକୀର୍ଣ୍ଣ, ବାକ୍ୟେ ଉଦାର,
ଦେଶେ ଏ କୁନୀତି କେହ୍ନି ନ ଧର ।

୧୬୧ — ଭଲ ପୋଷାକରେ ନ ଦିଅ ମନ,
ଉଲଗ୍ନ ସୋଦର ପାଉ ବସନ ।

୧୬୨ — ଜୀବନ ନ କାଟ କର ଗୋଲାମୀ,
ପୂଜ ନିତି ନିଜ ଜନମଭୂମି ।

୧୬୩ — ସବୁ ଆୟ ପଛେ ଘରକୁ ନିଅ,
ଦିନକର ଆୟ ଦେଶକୁ ଦିଅ ।

୧୬୪ — ନିଜ ଗୋଡ଼େ ନିଜେ ନ ହୋଇ ଠିଆ
ଏଣେ ତେଣେ ଭୁଆଁ ବୁଲୁଛ କିଆଁ !

୧୬୫ — ଦେଶ କାରିଗର ହେଲେ ଉଛନ୍ନ,
ପର ପଣ୍ୟେ ଆଉ ନ ବଳା ମନ ।

୧୬୬ — ମାତୃଭୂମି-ସେବା ପବିତ୍ର ବ୍ରତ,
ସେହି ବ୍ରତେ ସର୍ବେ ହୁଅ ଦୀକ୍ଷିତ ।

୧୬୭ — ପର କାର୍ଯ୍ୟେ ପଛେ ଖୋଜୁଥା ବାଦ,
ଦେଶ କାର୍ଯ୍ୟେ ଭୁଲ ସକଳ ଭେଦ ।

Digitized by srujanika@gmail.com

୧୬୮ — ବଡ଼ଲୋକେ ଯିନା ଉଦ୍ଧର ନାହିଁ,
ସ୍ୱଦେଶ କାର୍ଯ୍ୟରେ ସମସ୍ତେ ଭାଇ ।

୧୬୯ — ମିଠା କଥା ଖାଲି ତୁଣ୍ଡରେ ଧର
ଦେଶ କାର୍ଯ୍ୟ କେହି ନ ଯାଅ କର ।

୧୭୦ — କାର୍ଯ୍ୟୋଦ୍ଧାର ଇଚ୍ଛା ନ କର ତୁଣ୍ଡେ,
"ଷଣ୍ଡ" ବୋଲି ନାଆଁ ନ ପଡୁ ଦାଣ୍ଡେ ।

୧୭୧ — କାର୍ଯ୍ୟର ଦାୟିତ୍ୱ ନଏ ଯେ ମୁଣ୍ଡେ,
ଶକ୍ତିମତେ କାର୍ଯ୍ୟ କରେ ସେ ଦଣ୍ଡେ ।

୧୭୨ — କର୍ମବୀର ଦିନ କାଟଇ ସୁଖେ,
କର୍ମକୋଢ଼ି ଏକା ମରଇ ଦୁଃଖେ ।

୧୭୩ — ପର ସବୁ ଘରୁ ନେଉଛ ଭିଡ଼ି,
ବଦଲେ ନ ଦିଏ କାଣିକଉଡ଼ି ।

୧୭୪ — ଧରମ କରମ ଗଲାଣି ସବୁ,
ଧୋବ ଲୁଗା ପିନ୍ଧି ନ ହୋଇଲୁ ବାବୁ ।

୧୭୫ — ଉପରେ ଧୋବଲା ଭିତରେ ମଳ
ନ ହୁଅ କଦାପି ବାବୁଙ୍କ ଦଳ ।

Digitized by srujanika@gmail.com

୧୭୬ — ଚନ୍ଦ୍ରା ପଡ଼ିଯାଏ ଧୋବଲି ଠକ,
ହଂସ ମେଳେ କେବେ ଲୁଚେ କି ବକ ?

୧୭୭ — ଦେଶପାଇଁ ସ୍ୱାର୍ଥ ନ ଦେଲେ କିଛି,
ନିଜର ଜୀବନ ନୁହେ କି ଛିଛି ?

୧୭୮ — କେତେ ଶାସ୍ତ୍ର କେତେ ପୁରାଣ ପଢ଼ି,
ନ ହୁଅ ହେ ଶେଷେ କରମକୋଢ଼ି ।

୧୭୯ — ମନରେ ନ ଥିଲେ ଧରମ-ଚିନ୍ତା,
କି ହେବ ପୂଜିଲେ ଦିଅଦେବତା ?

୧୮୦ — ଦେଶ କଥା ମନେ ନ ପଡ଼େ ଯାର,
ଜୀବନ ମରଣ ସମାନ ତାର ।

୧୮୧ — କର୍ମ-ହୀନ ହୋଇ ନ ରହ ଶୋଇ,
"କୁଳାଙ୍ଗାର" ବୋଲିବ କହୁ କେହି ।

୧୮୨ — ଧନୀ ଜ୍ଞାନୀ ନୁହ ଆତ୍ମାଭିମାନୀ,
କାର୍ଯ୍ୟକ୍ଷେତ୍ରେ ଚାଲ ସାନଙ୍କୁ ଘେନି ।

୧୮୩ — ସ୍ୱଦେଶୀ ଦରବ ଦେଖାସୁନ୍ଦର,
ବିଦେଶୀ ଚକଚକ ଫମ୍ପା ଭିତର ।

Digitized by srujanika@gmail.com

୧୮୪ — ଦେଶୀୟ ଜିନସ ନଡ଼ିଆ ପରି,
ବାହାରେ ଟାଣୁଆ ଭିତରେ ବାରି ।

୧୮୫ — ଥିଲେ ଥାଉ ପଛେ ଗୁଣ ହଜାର,
ଚରିତ୍ର ନ ଥିଲେ ସବୁ ଅସାର ।

୧୮୬ — ମନ ଦେଲେ ସିନା କାମକୁ ପାଏ,
ଅଲଣା କଥାକୁ ପଚାରେ କଏ ?

୧୮୭ — ମନେ ମନେ କେହି ନ ହୁଅ ଜଣେ,
ତୁମ୍ଭ ପରି ଥିବେ ଜଗତେ ପଣେ ।

୧୮୮ — ବାହାଦୁର ଖାଲି ନେବାକୁ ଦାଣ୍ଡେ,
ମିଠା କଥା ତୁଚ୍ଛା ନ ଧର ତୁଣ୍ଡେ ।

୧୮୯ — ଚିନ୍ତା, ବାକ୍ୟ, କାର୍ଯ୍ୟ କଲେ ପବିତ୍ର,
ଧରାଧାମେ ହେବା ଆଦର୍ଶ ପୁତ୍ର ।

୧୯୦ — ଶକ୍ତିମତେ କାର୍ଯ୍ୟ କର ଦେଶର,
ଦାଣ୍ଡକୁ ନ ହୁଅ ଦେଖାସୁନ୍ଦର ।

୧୯୧ — ବଡ଼ ସାନ ଭାଇ ସକଳେ ମିଶି,
ଜାତୀୟତା-ସ୍ରୋତେ ଚାଲ ହେ ଭାସି ।

Digitized by srujanika@gmail.com

୨୯୨ — ବାକ୍ୟ କ୍ଷେତ୍ର କେହି ନ କର ମିଛା,
କର୍ମକୋର୍ଟି ବୋଲି ନ ପଡ଼ ଚନ୍ଧା ।

୨୯୩ — ଉପକାର ଯେବେ କାମକୁ ଆସେ,
କଜର ବୋଲି ସେ ଅଖିକ ଦିଶେ ।

୨୯୪ — ସ୍ୱଦେଶ-ସେବାରେ ହେଲେ ଶରଧା,
ରାଜଭକ୍ତ ତହିଁ ନ ଦିଏ ବାଧା ।

୨୯୫ — ସଂସାର ଯାହାକୁ ଦେଖାଏ ଭୟ,
ଦେଶ-ସେବା ତାକୁ ଦିଏ ଅଭୟ ।

୨୯୬ — ଦେଶହିତେ ଯାର ନାହିଁଟି ମନ,
ପଶୁଠାରୁ ହୀନ ଅଟେ ସେ ଜନ ।

୨୯୭ — ଦେଶ କାର୍ଯ୍ୟେ କେହି ନ କର କଳ,
ଭଗାର ନ ମାରୁ ପଛରେ ତାଳ ।

୨୯୮ — ସ୍ୱୀକୃତ ବଚନ୍ କର ପାଳନ,
ପରେ ଭଲ ପାଇ କର ଶାସନ ।

୨୯୯—"ବନ୍ଦେ ମାତରଂ" ଏହି ସଞ୍ଜୀବନ ମନ୍ତ୍ର
ଚଳାଇବ ଭାରତର କୋଟି ହୃଦ-ଯନ୍ତ୍ର ।

Digitized by srujanika@gmail.com

୩୦୦ — "ଉତ୍କଳ ଜନନୀ ଆଜି ରହିଛନ୍ତି ଗର୍ହି,
କର୍ତ୍ତବ୍ୟ କରବ ପ୍ରତି ସୁତ ତାଙ୍କ ପାଇଁ ।"

୩୦୧—ଯେ ଦେଶେ ଆଦୃତ ହୁଏ ସ୍ୱଦେଶର ପଣ୍ୟ,
ଭୁଞ୍ଜେ ସେହୁ ସ୍ୱର୍ଗସୁଖ, ଯଶୁଧାମେ ଧନ୍ୟ ।

୩୦୨— ନିଜ ସ୍ୱାର୍ଥେ ମାତି ଯେହୁ ଦେଶ ସ୍ୱାର୍ଥ ଭୁଲେ,
ସଂସାରେ ନାହିଁ ଟି ଆଉ ମୂର୍ଖ ତାର ତୁଲେ ।

୩୦୩—ସ୍ୱାର୍ଥ ବଳି ଦେଇ ମାତୃ-ଭୂମି ସେବା କଲେ,
ଧର୍ମ, ଅର୍ଥ, ମୋକ୍ଷ, କାମ ପୂର୍ଣ୍ଣ ହୁଏ ଭଲେ ।

୩୦୪— ଧନ, ମାନ, ଗଉରବ ଯେବେ ଅଛ ଖୋଜା,
ସ୍ୱାର୍ଥ ତେଜି କର ନିଜ ମାତୃ-ଭୂମି ପୂଜା ।

୩୦୫— କଡ଼ାଏ ଯେ କର ନାହିଁ ଦେଶହିତେ ଦାନ,
ଜାତୀୟ ସମାଜେ ନାହିଁ ମିଳେ ତାର ସ୍ଥାନ ।

୩୦୬ —ଇଚ୍ଛ ଯେବେ ଲଭିବାକୁ ବଳ, ବୀର୍ଯ୍ୟ, ଶୌର୍ଯ୍ୟ,
ସଂଯମୀ ହୋଇଣ ପାଳ ବ୍ରତ-"ବ୍ରହ୍ମଚର୍ଯ୍ୟ" ।

୩୦୭ —ମାନ ଅଭିମାନ ଆଦି ମନ୍ଦ ଗୁଣ ତେଜି,
ସାର୍ଥ କର ଜୀବନକୁ ମାତୃ-ପଦ ପୂଜି ।

Digitized by srujanika@gmail.com

୩୦୮—ତପ, ଜପ, ଯୋଗ ପୁଣି ଦେବ-ଆରାଧନା,
ଫଳ ନାହିଁ ତହିଁ ବିଳେ ଦେଶସେବା ବନା ।

୩୦୯—ଈଶ୍ୱରଙ୍କ ଅଟଇ ଜାଣ ଦେଶ-କର୍ଣ୍ଣଧାର,
ତାର ପନ୍ଥା ଅନୁସର ମାତାଙ୍କୁ ଉଦ୍ଧର ।

୩୧୦—ମାତୃଭୂମି ପୂଜା ବନା ପୂଜିଲେ ଈଶ୍ୱର,
ସୁସିଦ୍ଧ ନୁହେ ସେ ପୂଜା ଜାଣ ଏହା ସ୍ଥିର ।

୩୧୧—ବାକ୍ୟବୀର ଦାଣ୍ଡ ହାଟେ ଭକ୍ତ ଭୁକ୍ତ ମରେ,
କର୍ମବୀର କର୍ମସୂତ୍ର ଖୋଜେ ନିରନ୍ତରେ ।

୩୧୨—ଜୀବନର ଲକ୍ଷ୍ୟ ଭୁଲ୍ଲା ନ କର ଗୋଳମୀ,
ଦେଶହିତ କାର୍ଯ୍ୟ କର ପୂଜ ଜନ୍ମ-ଭୂମି ।

୩୧୩—ସାନ ବଡ଼ ହୁଇ ମନେ ଦେଇ ପ୍ରେମ-ଗଣ୍ଠି,
ପେଠକଧା ମୂଠି କର ସ୍ୱଦେଶର ପାଣ୍ଠି ।

୩୧୪—ଏ ଉଙ୍ଗୁର ଦେହ ଘର, ଯିବ ଦିନେ ଧର୍ଙ୍ଗି,
ଏଣୁ ତାକୁ ବଳ ଦିଅ ପର-ହିତ ଲାଗି ।

୩୧୫—"ରେ ସୁସୁପ୍ତ ପ୍ରାଣ, ନୋହୁ ଯେବେ ସୁଖଭୋଗ,
ସୁଖେ କର ପଦାଘାତ ସାଧ କର୍ମଯୋଗ ।"

Digitized by srujanika@gmail.com

୩୧୬ — "କର୍ମ କର, ଗଳଗ୍ରହ ନ ହୁଅ ପରର,
ନ ହୁଅ ପ୍ରତ୍ୟାଶୀ ଛାଡ଼ି ବନ୍ଧୁ କୁଟୁମ୍ବର ।"

୩୧୭ — "ଯେପର ସାଧିବ ସିଦ୍ଧି ହୋଇବ ତେସନ,
ଅତଏବ କର୍ମ-ଯୋଗ ସାଧ ଅନୁକ୍ଷଣ ।"

୩୧୮ — "କର୍ମ କର ବୀର ପର ପ୍ରଭୁ ଶକ୍ତି ନେଇ,
ନ ଦିଅ ଭାଗ୍ୟର ଦୋଷ କ୍ରୀତଦାସ ହୋଇ ।"

୩୧୯ — "ମାତୃଭୂମି ମାତୃଭାଷା ଉଭୟେ ଜନନୀ,
ଭକ୍ତିଭରେ ପୂଜ ତାଙ୍କୁ ଦିବସ ରଜନୀ ।"

୩୨୦ — ନିଜ ଇଷ୍ଟସିଦ୍ଧି ସଙ୍ଗେ ଦେଶହିତ ଆଶେ
ଜଣାଅ ନିରତେ ଭାଇ, ବିଶ୍ୱରାଜ ପାଶେ ।

୩୨୧ — "ଶୌର୍ଯ୍ୟ, ଲଜ୍ଜା, ବୁଦ୍ଧି, କୀର୍ତ୍ତି ଆବର ଧୀରତା,
ମାନବହୃଦୟବାସୀ ଏ ପଞ୍ଚ ଦେବତା ।"

୩୨୨ — "ଏକମାତ୍ର ସେହି ବିଦ୍ୟା ମାନବନୟନ,
ସେ ନୟନ ନାହିଁ ଯାର ଅନ୍ଧ ସେହି ଜନ ।"

୩୨୩ — ଗୋଟିଏ ପଛକେ ହେଉ ପୁତ୍ର ଗୁଣବାନ,
ଶତ ଶତ ମୂର୍ଖ ପୁତ୍ରେ ନାହିଁ ପ୍ରୟୋଜନ ।

Digitized by srujanika@gmail.com

୩୨୪—"କର୍ମଦୋଷେ କ୍ରମେ କ୍ରମେ ହୁଏ ଅଧୋଗତି,
କର୍ମଗୁଣେ କ୍ରମେ କ୍ରମେ ଜାଣିବ ଉନ୍ନତି ।"

୩୨୫—"ଦିନ ରାତି କର ଧାଇ ପୁଣ୍ୟ ଆଚରଣ,
ସଂସାର ଅନିତ୍ୟ ମନେ ରଖ ଅନୁକ୍ଷଣ ।"

୩୨୬—"ଦୁଷ୍ଟର ସଂସର୍ଗ ହେତୁ ପ୍ରାଣାନ୍ତେ ସଜ୍ଜନ
ନିଜ ସାଧୁ ଭାବ କେବେ ନ କରେ ବର୍ଜ୍ଜନ ।"

୩୨୭—"ସନ୍ତୋଷରୂପ ରତନ ହୃଦୟରେ ଧର
ସଂସାରେ ସକଳ କାର୍ଯ୍ୟ ଧୀରେ ଯାଅ କର ।"

୩୨୮—ନିଜ ଦୋଷ ଆଗେ ବୁଝି କର ସଂଶୋଧନ,
ପରେ ଯାଇଁ ପର ଦୋଷ କର ଅନ୍ୱେଷଣ ।

୩୨୯—ଦେଶବାସୀ ନରନାରୀ ସମସ୍ତେ ଭାଇ ଭଉଣୀ,
ପିତା ସେହି ଦୁଃଖହାରୀ, ଜନନୀ ଜନ୍ମଭୂମି ।

୩୩୦—ଯାହା ଅଛି ନିଜ ଘରେ ଇଚ୍ଛାମତେ ବାଛି ନିଅ,
ନ ଡାକ ପର ଦୁଆରେ 'ବାବୁ ! କିଛି ଭିକ୍ଷା ଦିଅ ।'

୩୩୧—ଧନ ରତ୍ନ ଆଦି ମାତା ସଞ୍ଚିଛନ୍ତି ଯାହା ଯେତେ,
ଦେଶର ଯେ ଜ୍ୟେଷ୍ଠ ଭ୍ରାତା କହିଛି ତାଙ୍କର ହାତେ ।

Digitized by srujanika@gmail.com

୩୩୨ — ପିତା ଯାହା ଦେଇଛନ୍ତି ସନ୍ତାନପୋଷଣ ପାଇଁ,
ମାତା ତାହା ରଖିଛନ୍ତି କାନିରେ ଗଣ୍ଠି ପକାଇ।

୩୩୩ — ରକ୍ତ ମାଂସ ଦେହ ବହି ହେ ଉତ୍କଳୀ ଝିଅ ପୁଅ,
କେମନ୍ତେ ଧରଛ ଛାତି ମା ଆଖିରେ ଦେଖି ଲୁହ ?

୩୩୪ — ଆମ୍ଭେମାନେ ଏଡ଼େ ଭଣ୍ଡ ମାଆକୁ ତଳେ ପକାଇ
ଘୋଡ଼ା-ମୁହେଁ ବୁଲୁ ଦାଣ୍ଡେ ସ୍ୱାର୍ଥର ଢକ୍କା ବଜାଇ।

୩୩୫ — ମା ଆମ୍ଭର ଘରତରେ ଅନ୍ନ ଦିଏ ରାଜରାଣୀ,
ଆଜି ପୁଣି ପରଦ୍ୱାରେ ଅଇଁଠାର କାଙ୍ଗାଳୁଣୀ।

୩୩୬ — 'ଗତସ୍ୟ ଶୋଚନା ନାସ୍ତି' ଆସ ଭାଇ ଉଠି ଆସ,
ବହିକ ବହିବା ଶାସ୍ତି ଫେଡ଼ି ମାତୃ-ଦୈନ୍ୟ-ପାଶ।

୩୩୭ — ନବାବରଣ ଲାଜ ଭେକ ବାସ ଖାଦ୍ୟ ଜନନୀର
ମିଳି ସବୁ ପୁଅଯାକ ଚୁମ୍ବିବା ପଦାଂଘ୍ରି ତାର।

୩୩୮ — ହସ ନେଇଁ ମା ହସ ହସ ପାହିଲାଣି ଜଣୀ ଘୋର,
ଭୃକ୍ତି ପ୍ରଭାତ ନଭସ୍ଥ ଚେତିଲେଣି ପୁଏ ତୋର।

୩୩୯ — ଦୟା ପବିତ୍ରତା ବିନୟ ନମ୍ରତା
ସହିଷ୍ଣୁତା କ୍ଷମାଧାର ଯେଉଁଠି

Digitized by srujanika@gmail.com

ସ୍ୱର୍ଗ ତାର ହୃଦେ, ନମ ତାର ପଦେ,
ଭବେ ଦେବରୂପୀ ଅଟେ ସେହିଟି ।

୩୪୦—ନିଃସ୍ୱାର୍ଥ ଭାବରେ ସ୍ୱଦେଶ ହିତରେ
ଢାଳି ଦିଏ ଯେହୁ ଜୀବନ ମନ,
ଧନ୍ୟ ତା ଜନମ, ଧନ୍ୟ ତା ଜୀବନ,
ଧନ୍ୟ ତା କରମ, ଧନ୍ୟ ସେ ଜନ ।

୩୪୧—"ଅତୀତ ଗୌରବ, ଅତୀତ ବଇଭବ
ବହୁ ନାହିଁ କାହା ମନ,
ଯାଉ ଦୁଃଖ-ନିଶା, ଦୁଃଖିନୀ ଓଡ଼ିଶା
ଦେଖୁ ବାରେ ଶୁଭ ଦିନ ।"

୩୪୨—"ଉଠ ଉଠ ଭାଇ, ଶୋଇ କାର୍ଯ୍ୟ ନାହିଁ,
ପାହିଲାଣି ଅମାରାତି;
ନବୀନ ଉତ୍ସାହେ, କାର୍ଯ୍ୟେ ଲାଗିଯାଅ
କାର୍ଯ୍ୟେ ରତ ସବୁ ଜାତି ।"

୩୪୩—"ଅଦମ୍ୟ ଉତ୍ସାହ, ଅକ୍ଳାନ୍ତ ଶ୍ରମର
ବଶ ହୋଇ ଉଠ ଉଠ ବହିନ,
ଦୁଃଖିନୀ ଜନନୀ ଦୁର୍ଗତି ହରଣେ
ତ୍ୟାଗ ଭାଇ କର ସର୍ବସ୍ୱପଣ ।"

Digitized by srujanika@gmail.com

୩୪୪—ଉନ୍ନତିବିଧାନ ନିଜ ଦେଶଭୂଷା,
ତା ସେବାରେ ଦିନ ଯାଉ,
ସ୍ୱର୍ଗରୁ ମହତ ଜନମଭୂମି ଟି,
ଭକ୍ତି ତହିଁ ଦୃଢ ଥାଉ ।

୩୪୫—"ଅଳସ ନିଶ୍ଚେଷ୍ଟ ମ୍ରିୟମାଣ ସଦା
ଉତ୍କଳୀୟେ ନ ରହୁ ଆଉ,
କର୍ମର ସାଧନେ ଦିଅ ଦିଅ ପ୍ରାଣ
ନିଜ ହୀନତା ଗଳିଯାଉ ।"

୩୪୬—"ଅରଜ ହେ କର୍ମର ସମ୍ପଦ
'କର୍ମହିଁ ଧର୍ମ' ମନ୍ତ୍ର ଜପି
ହୁଅ ସତ୍ୟ-ଜ୍ଞାନ-ବିଶାରଦ
ବଳ ବୁଦ୍ଧି ସବୁ ଅରପି ।"

୩୪୭—"ହେ ଉତ୍କଳ ଯୋଗ୍ୟ ସୁତ,
କର ମାତୃଭୂମି ହିତ ।
ଦୁଃଖିନୀ ଜନନୀ ଦୁଃଖ
ଦେଖି କି ହେଲ ବିମୁଖ ?"

୩୪୮—"ଯା ଖ୍ୟାତି ନାହିଁ ଜଗତରେ,
ଲୋକର ମଙ୍ଗଳ ନ କରେ,

Digitized by srujanika@gmail.com

ନ ପାଞ୍ଚେ ଦେଶର କଲ୍ୟାଣ,
ବୃଥା ଅଟଇ ତାର ପ୍ରାଣ ।”

୩୪୯ — “ଅସାଧ୍ୟ କି ଅଛି ଜଗତେ ?
ସକଳ ଯତ୍ନର ଆୟତ୍ତେ ।
ମାନବ ଯାହା କରପାରେ
କପାଁ ଅସାଧ୍ୟ ତୁମ୍ଭଠାରେ ?”

୩୫୦ — ଯାଇ ପାଶ୍ଚାତ୍ୟ ଆଲୋକ,
ଜାଗିଲେ ସକଳ ଲୋକ;
ତୁମ୍ଭେ କାହିଁକି ନ ତେଜ
ଦିବା ନିଶି ସୁଖଶେଯ ।

୩୫୧ — ଦେଇ ମନ ପ୍ରାଣ ଧନ
କର ଉନ୍ନତି ବିଧାନ ।
ନ ଖୁଡ଼ ଶୁଭମୁହୂର୍ତ୍ତ
ବ୍ୟସନେ ରସି ସତତ ।

୩୫୨ — ଏବେ ସର୍ବେ ଏକ ହୋଇ
ଭେଦାଭେଦ ଛାଡ଼ି ଦେଇ
ପ୍ରାଣପଣେ ଲାଗ ଯାଇ
ସ୍ୱଦେଶର ହିତପାଇଁ ।

Digitized by srujanika@gmail.com

୩-୫-୩ — ଧରି ଧରି ହୋଇ ଏକ
ରଖ ମାତୃଭୂମି ଟେକ,
ଦୂର ହେବ ସର୍ବ ଦୁଃଖ,
ଭୁଞ୍ଜିବ ବିମଳ ସୁଖ ।

୩-୫-୪ — ବିଷାଦ ଆଳସ୍ୟ ତେଜି
ଅତୀତ ଗୌରବ ହେଜି,
ପୂଜିବା ମାତୃ ଚରଣ,
ଯାଉ ବା ରହୁ ଜୀବନ ।

୩-୫-୫ — ମାତୃଦୁଃଖ ଦେଖି କାପୁରୁଷ ପରି
କାଳ ଅତିପାତ କରେ ଯେ ଜନ,
ଶୃଙ୍ଗଲାଙ୍ଗୁଳହୀନ ହେଲ୍ପ ପଶୁ ବନା
ତାକୁ ଆଉ କହା ଯିବ କି ଆନ !

୩-୫-୬ — "ନୈତିକ ସାହସେ ହୋଇଣ ସାହସୀ,
କର୍ତ୍ତବ୍ୟ-ରୂପିଣୀ ତରୀ ପରେ ବସି ,
ବିବେକ ଆହୁଳା ଅବିରତେ ମାର,
ହେବ ଯେବେ ତବେ କର୍ମ ସିନ୍ଧୁ ପାର ।"

୩-୫-୭ — "ପ୍ରେମଭାବେ ଯାର ଅନ୍ତର ପୂରିତ
ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ,

Digitized by srujanika@gmail.com

ସହାନୁଭୂତିଃ ସର୍ବ ଭୂତେ ତାର,
ତା ଦୃଷ୍ଟିରେ ବିଶ୍ୱ ଏକପରିବାର ।"

୩୬୮—"ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି,
ଧର୍ମ ଏକା ସିନା ମହତ୍ତପଣିଆ,
ଆଉ ବଡ଼ପଣ ଅଢ଼େଇଦିନିଆ ।"

୩୬୯—"କର୍ମହିଁ ଜୀବନ, କର୍ମହିଁ ଉଦ୍ଦେଶ୍ୟ,
ଜଡ଼ତା ଜୀବନ୍ତ ମରଣ ସିନା,
ଦୁର୍ଲ୍ଲଭ ମାନବ-ଜୀବନ ବ୍ୟର୍ଥ
ଅବଶ୍ୟ କର୍ତ୍ତବ୍ୟ ସାଧନ ବିନା ।"



Digitized by srujanika@gmail.com